# ଶ୍ରୀଲକ୍ଷ୍ମୀଙ୍କ ସ୍ତୁତି ।



ଗୁରୁବାରେ ଲକ୍ଷ୍ମୀଙ୍କର ଆଗେ ଏହୁ ସ୍ତୁତି ।
ପଢେ ଯେ ହୁଅଇ ତାର ଅଚଳ ସମ୍ପତ୍ତି ॥

ଶ୍ରୀନରସିଂହ ଚୌଧୁରୀଙ୍କଦ୍ୱାରାରଚିତ
ଓ ପ୍ରଥମବାର ପ୍ରକାଶିତ

Printed by T. Srinivasachary
at the Raghunandan Press
PURI 1927.

ମୂଲ୍ୟ ଦୁଇପଇସା ଠ°୬

ତର୍ପାର ପୁତ୍ର । ଅଁଳା ତାଳକୁ ଦେବ ଢୋଇଣ ହରଷ ।୧୬। ଅଗୁଅ-
ଗୃହୁଳ ଦଣଶୋହ୍ରିକୁ ତାପରେ । ଦଣଫୁଲ ଦଣଦୁବ୍ବାଦଲ ଯତନରେ
ରଖିଣ ଲକ୍ଷ୍ମୀଙ୍କୁ ବେବ ନାମ ଧରି ଧିରେ । ହୁଳହୁଳି ନାଦ ଚହୁଁ ଦେବ
ଅନନ୍ଦଭେ ।୧୭। ଘୃତଦୀପ ନିକଟରେ ସୁଧିରେ ଜାଳିବ । ଅନ୍ନବ୍ୟଞ୍ଜନା
ଦି ଥୋଇ ପୂଜା ଅରମ୍ଭିବ ।୧୮। ଭକ୍ତିଭାବେ ଲକ୍ଷ୍ମୀଙ୍କର କରିବ ପୂଜା-
ନ୍ତୁ । ପୂଜା ଅନ୍ତେ ଜଳ ଦେବନ୍ତୁ ଆଚମନକୁ ।୧୯। ଚହୁଁ ଦୁବ୍ବାଦଳେ
ହୁଳହୁଳି ନାଦ ଦେଇ । ଲକ୍ଷ୍ମୀଙ୍କୁ ବନ୍ଦାଇବ ଏକାଗ୍ରଚିତ୍ତ ହୋଇ ।୨୦
ଦୁଗ୍ଧରେ ଚନ୍ଦ୍ରନ ମିଶାଇଣ ଅର୍ଘ୍ୟ ଦେବ । ଘୃତଦୀପ ଭକ୍ତିଭାବରେ
ଦେଖାଇବ ।୨୧। ମହାଲକ୍ଷ୍ମୀ ପାଦପଦ୍ମେ ଶିରକୁ ଲଗାଇ । ଉଠି କର
ଯୋଡ଼ି ସ୍ତୁତି ଅରମ୍ଭିବ ଚହିଁ ।୨୨। ସ୍ତୁତି କରିବା କାଳରେ କେ କେ
ବେ ଡାକି ଦେବ । ମଥାକୁ ପୋଛିଣ ତାକୁ କଥା ନ କହିବ ।୨୩।

( ସ୍ତୁତି )

ନମସ୍ତେ ନମସ୍ତେ ମାଗୋ ସାଗର ଦୁହିଣୀ ।ହରିପ୍ରିୟା ଦୟାବତୀ
ପଦ୍ମବାସିନୀ ।୨୪। ନମସ୍ତେ ନମସ୍ତେ ରମା ଦୁରିତ ନାଶିନୀ । ଦୁଃଖ
ଜ୍ବାଳ ବିନାଶିନୀ ଜଗତ ମୋହିନୀ ।୨୫। ସନ୍ତୋଷଦାୟିନୀ ସୁଦାମା ଦାରିଦ୍ର
ଭଞ୍ଜନୀ । ଅରକ୍ତ ଅଧିନାୟିକା ପଙ୍କଜ ଧାରିଣୀ ।୨୬। ସଜସରୋଜ ପ-
ଦ୍ମରେ ନୂପୁର ଝଙ୍କିଣୀ । ମୃଦୁଗମନ କାଳେ ବାଜେ କଣିକଣି ।୨୭।
ସ୍କନ୍ଧରେ କେଶଗୁଚ୍ଛ ଦିଶେ ମନୋରମ । ଅମଳକମଳଗାତ୍ର ଜଣେ
କୋଟି କାମ ।୨୮। କମଳ କୋମଳ କରେ ଶୋଭିବନ । ଚହୁଁ
ପାଖେ ଝଲମଲ ଦିଶଇ ଯତନ ।୨୯। ବାହୁରେ ଯେ ବାଜୁବନ୍ଧ ବତ-
ଗଠନ । ନାନା ଭୂଷଣେ ଜଗତ ମୋହି ନିଏ ମନ ।୩୦। କର୍ଣ୍ଣରେ

ସ୍ୱର୍ଣ୍ଣପଦକ ମାଳା ନାନା ଜାତି । ହୀରା ନୀଳା ମୋତି ମାଣିକ୍ୟରେ ଗ୍ରଂ-
ଥିତ ଛନ୍ଦ ।୩୧। ସ୍ତନପରେ ଶୋଭାମାନ ଦଶର ଗୁଚ୍ଛର । ତହିଁ ମଧ୍ୟେ
ଯତ୍ନେ ରହିଅଛି ଅଳଙ୍କାର ।୩୨। ସ୍ୱରମଧ୍ୟରେ କୋମଳ ବୀଣା ଜିଣା
ବାଣୀ । ବାହାର ନାରାୟଣଙ୍କ ମନ ନିଏ କିଣି ।୩୩। ନାସାପୁଟେ ନା-
ନା ରତ୍ନେ ଅଳଙ୍କାର ଶୋଭେ । କମଳଦଳ ନୟନ ଦୃଷ୍ଟି ମନ ମୋ-
ହେ ।୩୪। ଭାଲରେ ସିନ୍ଦୂରବିନ୍ଦୁ ଦଶର ବୃନ୍ଦବ ।ଚନ୍ଦ୍ର ପାଶେ ସୁଶୋଭି-
ତା ଅଛି ଜଡ଼ିତ ।୩୫। କର୍ଣ୍ଣେ ଶୋଭେ କର୍ଣ୍ଣଫୁଲ ପୁଣି ଫାଶି କଣ୍ଠି ।
ଅଙ୍ଗୁରୀରତ୍ନେ ବିଶ୍ୱକର୍ମା ଗଢ଼ିଅଛି ଗଢ଼ି ।୩୬। ଭୁଜମୂଳ ଧନଜନଲ ଅଙ୍ଗ-
ଣେ ପତନ । ସ୍ୱର୍ଣ୍ଣ ଅଳଙ୍କା ତହିଁରେ କଣେ ଶୋଭାବନ ।୩୭। ଶିରୀର
କଟୀ ସୁନ୍ଦର ଅଙ୍ଗୁରଚଳରେ । ଝଣ ସୁମୋହିନୀ ବେଣୀ ବେକୁ ବର୍ଣ୍ଣି
ପାରେ ।୩୮। ତୋ ରୂପଙ୍କ ଉପମା ଦେବାକୁ କବି ନୋହେ । ବେଦ
ନ ପାରିବ ମୁଁ କି ସ୍ତବ ଦେଇ ପାରେ ।୩୯। ପ୍ରଥମରେ ନାମ ଲକ୍ଷ୍ମୀ
କମଳା ଦ୍ୱିତୀୟେ । ତୃତୀୟେ ପଦ୍ମା ଚତୁର୍ଥରେ ହରିପ୍ରିୟେ ।୪୦।
ପଞ୍ଚମରେ ଦାରିଦ୍ର୍ୟଭଞ୍ଜନୀ ନାମ ଖ୍ୟାତ । ଷଷ୍ଠରେ କମଳାଳୟା ନାମ ବି-
ଖ୍ୟାତ ।୪୧। ସପ୍ତମେ ଜଗତମୋହିନୀ ଚଞ୍ଚଳା ଅଷ୍ଟମେ । ନବମେ ନା-
ନକୀ ରମା ନାମ ତୋ ଦଶମେ ।୪୨। ଏ ଦଶ ନାମଙ୍କୁ ନାରାୟଣ ଯେ
ଶୁଣଇ । ଦରିଦ୍ର ବାଧା ତାହାର ଲେଶେ ନ ରହଇ ।୪୩। କଳ୍ପଲତା
ନେନ ତାଳ ମା ଗୌରବେ ଦେଇ ଯିହୁଁ । ଅଭି ଦରିଦ୍ର ଅଚଳାଚଳ
ହୋଇ ପାର ।୪୪। ମନ୍ତ୍ରଜ୍ଞାନ କ୍ରିୟାଜ୍ଞାନ ଭକ୍ତିଜ୍ଞାନ ମୁହିଁ । ଯେସନ୍ତୁ ପୁ-
ଜିଲି ତୋର କୃପା ମାତ ତୁହି ।୪୫। ମୋର ଗୃହେ ନରନର ବିଜୟ
କରଣ । ଥିବ ବସ ସମ୍ପୂର୍ଣ୍ଣରେ ଦେଇ ତୋଷ ମନ ।୪୬। ଏମନ୍ତ
ବୋଲଣା ଦିଉଁ ଭୂମିରେ ଲାଗଇ । ଦୂର୍ବାଦଳ ଶ୍ୟାମଙ୍ଗ କରିବ ତୋଷ

ହୋଇ ।୪୭। ଆଉ ଏକ ବ୍ରତ ଅଛି ସୁଦଶା ନାମରେ । ପଢ଼େ ଯେ-
ବେ ଶୁକ୍ଳଦଶମୀ ଗୁରୁବାରେ ।୪୮। ସେହି ଦିନ ଏକା ସୁଦଶା ବ୍ରତ
ହୁଅଇ । ଦୁଇବେ ଦୋଷ ହୁଅନ୍ତି ଲକ୍ଷ୍ମୀଦେବୀ ତହିଁ ।୪୯। ଏହିରୂପେ
ଲକ୍ଷ୍ମୀବ୍ରତ ହୁଏ ହେ ନାରଦ । ଶୁଣି ମୁନି ହୃଦୟରେ ହୋଇଲେ ପ୍ର-
ମୋଦ ।୫୦। ଲକ୍ଷ୍ମୀଙ୍କ ଆଗରେ ଭକ୍ତିଯୁକ୍ତେ ଏହି ସ୍ତୁତି । କଲେ ବା-
ଞ୍ଛା ସିଦ୍ଧ ହୁଏ ସତ୍ୟ ଏ ଭାରତି ।୫୧। ବିଶେଷେ ମାର୍ଗଶିର ମାସ ଗୁରୁ
ବାରେ । ଲକ୍ଷ୍ମୀ ତୋଷ ହୁଅନ୍ତି ଏ ଗ୍ରନ୍ଥକୁ ପଢ଼ିଲେ ।୫୨। ଲକ୍ଷ୍ମୀଙ୍କ
ପାଦପଦ୍ମରେ ଦେଇ ସଦା ଚିତ୍ତ । ଦ୍ୱିଜ ନରସିଂହ ବୋଲେ ରକ୍ଷ ଜ-
ଗନ୍ନାଥ । ୫୩ ।

ସମ୍ପୂର୍ଣ୍ଣ ।

